# ଗୋଟିକ୍କଥା ।

" ବସନ୍ତ ଓ ବସ୍ତ୍ରବାତବସ୍ଥା" ପ୍ରଣେତା

ଶ୍ରୀ ଲାଲମଣିମିଶ୍ର ଶର୍ମ୍ମା

କର୍ତ୍ତୃକ

ସଂଗୃହୀତ ଓ ପ୍ରକାଶିତ ।

---

୧ ମ ସଂସ୍କରଣ ।

---

ବାମଣ୍ଡା ସୁଦଳଯନ୍ତ୍ରରେ ମୁଦ୍ରିତ ।

୧୮୯୫ ଖ୍ରୀଃ ।

---

# ଗୋ — ଚିକିତ୍ସା ।

୧ ମ ଭାଗ ।

---

ଅଗ୍ନି ମାନ୍ଦ୍ୟ ।

ଗୋରୁର କ୍ଷୁଧା କମିଗଲେ ଭାତ ଶିଙ୍ଗରେ ତେଲ ଲଗାଇ ଖରାରେ ଠିଆ କରାଇଦେବ । ୧ । ଅଥବା ଏ ମଦ, ଏକଛଟାଙ୍କ ଶୁଣ୍ଠି ଗୁଣ୍ଡ, ଏକତୋଳା ୨୦ ଗୋଲମରିଚ ଗୁଣ୍ଡ ଗରମପାଣିସଙ୍ଗେ ପିଆଇବ ( ବାଛୁରିମାନଙ୍କୁ ଅର୍ଦ୍ଧେକ ପରିମାଣରେ ପିଆଇବ ) । ୨ । ଶୁଣ୍ଠୀ , ଚିରେଇତା, ଗୋଲମରିଚ, ଜୁଆଣୀ ଏସବୁରୁ ୨୦ ତୋଳା ଲେଖାଏ ଆଣି ଚୂର୍ଣ୍ଣକରିବ , ତହିଁରେ ଏକଛଟାଙ୍କ ଲୁଣ ମିଶାଇବ । ସେହି ଗୁଣ୍ଡରୁ ଅଳ୍ପପରିମାଣରେ ପ୍ରତିଦିନ ଗୁଡମିଶା ଯାଉସଙ୍ଗେ ଖୁଆଇବ । ୩ । ପିପଳାମୂଳ , କଞ୍ଚାଦୁଧ , ଗୋଲମରିଚ, ଅଦା ଏକତ୍ରରେ ବାଟି ପିଆଇବ । ( ଏହି ଔଷଧରେ ବେଙ୍ଗା ରୋଗ ମଧ୍ୟ ଭଲହୁଏ ) । ୪ ।

---

ଅଖି ଫୁଲା ।

କାଚ ଓ ରସସିନ୍ଦୂର, ଗୋଲମରିଚ ଚୂର୍ଣ୍ଣକରି ଆଖିରେ ପୁରାଇ ଧୀରେ୨ ମନ୍ଥିବ । ୧ । ପାଚିଥିବା ଅଙ୍କରନ୍ତିଫଳର ରସ ଆଖିରେ ପକାଇବ । ୨ । କାନଫିର ଗଛର ଚେର, ଗୋଲମରିଚ , ବନ ହଳଦୀ, ଢାଂଚ ଏକତ୍ର ବାଟି ଆଖିରେ ପୂରାଇ ଧୀରେ୨ ମନ୍ଥିବ । ୩ । ପଞ୍ଚସିନ୍ଦୂ ଆଣି କାନମୂଳରେ ଖୋଳଦେବ । ୪ । କାଚ, ଫଟାସିନ୍ଦୂର ଚେଲୁଣି ଯୋକର ଖୋଳା ଏକତ୍ର ଗୁଣ୍ଡକରି ସବୁ କନାରେ ଛାଣି

ଅକ୍ଷିରେ ପକାଇବ । ୫ । ଗାଈଦୁଧ , କୁକୁଡ଼ାମଳ ଏକତ୍ର କରି ଅକ୍ଷିରେ ପକାଇବ । ୬ । ଉନ୍ଦୁରୁଢଗନ୍ଧ ଓ ଲୁଣଦଳ ପକାଇବ ।୭ ଧାନୁଆ ଲଙ୍କାମରିଚର ପତ୍ର ଓ ଲୁଣ ଦଳ ପକାଇବ । ୮ । ଅପରା-ଜିତା ପତ୍ର , ଗୋଡ଼ାଲୁଣ ମର୍ଦ୍ଦି ପକାଇବ । ୯ । ଶ୍ୱେତ କାଇଞ୍ଚମୂଳ, କେଶାମୂଳ , ବାଘୁଲି ସଙ୍ଗେ ଦଳିଦେଇ ଗୋରୁଙ୍କ ବେକରେ ବାନ୍ଧିଦେବ । ୧୦ ।

ଉକୁଣୀ ମାରିବାର ଉପାୟ ।

ଉକୁଣୀମାରି ଗଛର ଡାଳକୁ କାଟି ଉକୁଣୀ ହୋଇଥିବା ସ୍ଥାନ-ରେ ବୋଳିବ । ୧ । ଧୂଆଁ ପତ୍ରକୁ ପାଣିରେ ଉତ୍ତମ ରୂପେ ଚକଟି ସେହି ପାଣିକୁ ତୁପର ବେଳା ଗୋରୁ ଦେହରେ ବୋଳିଦେଇ ତହିଁ ଆରଦିନ ତାକୁ ଗାଧୋଇ ଦେବ । ୨ । ଲଣ୍ଡାବାଘୁଲି ଗଛ ପତ୍ର ଓ ମଞ୍ଜୀ ସହିତ ବାଟି ବୋଳି ଦେବ । ୩ । ରଙ୍ଗ ମାଟି ଓ ଖଇର ପେଣ୍ଡ ଏକତ୍ରରେ ବାଟି ବୋଳିଦେବ । ୪ ।

କାନ ପଚା ।

ଉଷୁନା ଚୁଣ୍ଡା କାନରେ ଚୂର୍ଣ୍ଣିଦେଲେ ଭଲ ହୁଏ । ୧ । ଭଜା-ଗୋରଷଗୁଣ୍ଡ ଭର୍ତ୍ତିକରିଦେବ । ୨ । ଝୁରୁଣା ମାଣ୍ଡିଆର ଚୂନା କାନ-ରେ ଚୂର୍ଣ୍ଣିଦେବ । ୩ ।

କାନ ପୀଡ଼ା ।

ନାଲି ଗଛର ପତ୍ର ବାଟି କାନରେ ଲେପିବ । ୧ । ଛୁଆ ଗୁଞ୍ଜଳ ଅଲକ୍ଷ୍ମୁ , ଲୁଣ , ଦୁବ , ଗୁଡ଼ ଏକତ୍ର ବାଟି ଲେପିବ । ୨ । ଗୁଡ଼ ଉଷୁନାଚୁଣ୍ଡା ଏକତ୍ରକରି ଲେପିବ । ୩ । ୱାକୁଅଲକ [ ମଲମ ]

ଗଣ୍ଡେ ବେଢରେ ବାନ୍ଧିଦେବ । ୪ । ରଙ୍ଗମାଟି, ଲୁଣ, ଭୁଅପଥର ପାଣି
କେଶଦୁଦୁସ ପତ୍ର, ଚଡ଼ାଭେଲ, କରପଞ୍ଚ ଭସ୍ମ ବାଟି ବୋଳିବ । ୫
ମୂଳକା [ ଶୁଣ୍ଠିଠାରେ ମିଳିବ ] ବାଟି ଲେପିବ । ୬ । ମୂଷାମାଟି ,
ଭୁଅପଥର ବା ବରଫ ଏକତ୍ର କରି ବୋଳଦେବ । ୭ । ମଞ୍ଜାସ୍ଵଭା ଭ
ଘୋଡ ସେହ୍ର ବଳା ବୋଳିବ । ୮ । ଗେରୁ ମାଟି ଲେପିବ । ୯ ।

## କୃମୀ ନାଶକ ।

ହିଙ୍ଗୁ ୧ ତୋଳା ୨୦ ରତି ଏକଛଟାଙ୍କ ଗନ୍ଧକ ଚୂର୍ଣ୍ଣ ସହିତ
ମିଶାଇ ୫ । ୭ ଦିନ ଯାଏ ଅଧସେର ଗରମ ଜଳ ସଙ୍ଗେ ଗୁଆଇ
ବ । ୧ । ଲୁଣ ଏକ ଛଟାଙ୍କ , ହୁମ୍କସ ୧ ତୋଳା ୨୦ ରତି, ଗନ୍ଧ
କ ଚୂର୍ଣ୍ଣ ୨୫ ତୋଳା ଏକତ୍ର କରି ୩ । ୪ ଦିନ ଯାଏ (ଦିନରେ ୨-୧
ଥର ଲେଖାଏ ) ଗୁଆଇବ । ୨ । ପେଟରେ ଜେନ୍ତୁ ଥିଲେ
ଅଧସେର ଚଣା ଡ଼ାଲି ଗୃହରେ ପାଣିରେ ପକାଇ ଦେବ , ସକାଳୁ
ସେହିପାଣି ଓ ଡ଼ାଲି ଗୋରୁକୁ ଗୁଆଇବ । ୩ । ଲୁଣ ଓ ବଂଶ ଦଳଦୀ
ଖୁଆଇବ । ୪ । ପୋଡ଼ାଚନ୍ଦ୍ରକୁଳ ଓ ପାଳଧୂଆ ଗଛର ଛାଲକୁ ବାଟି
ପିଆଇବ । ୫ ।

## ଖାବୀଣ ରୋଗ ।

ଏରୋଗ ହେଲେ ଗୋରୁର ଅଗଚଟୁଅରେ ବଥପର ବାହାରେ
ଏପରି ହେଲେ ହୁଙ୍କାଂଟାଙ୍କୁ ଓ ମାଟି, ଗୁଡ଼, ଚଣ୍ଡଶିଙ୍ଗୁ, ସଜନାଛାଲ, ରୋଗୀ
ଗୋରୁର ମଳ, ଧଳାତଭା ଏକତ୍ର କରି ଶିଝାଇ ବେଦନା ଉପରେ
ଲେପିବ । ୧ । ପଦ୍ମଅବୃଢରେ ଘିଅଲଗାଇ ବେଦନାର ଗ୍ରହ-
ପାଶେ ଲଗାଇଦେବ । ୨ ।

## ଗୋଡଭଙ୍ଗା ।

ଗୋଡକୁ ସଳଖକରି ବାନ୍ଧିବ ଏବଂ ଗନ୍ଧତାମୂଳ , ଫିରିଙ୍ଗମଲି ( ଘଉଡ଼ପାଣିଦେଇ ସେଠାରେ ନିମସ୍ଥାଇକରି ) ଏଣି ଏକସଙ୍ଗକରି ଅଟେଇଓଲି ଗୋରୁର ଭଙ୍ଗାସ୍ଥାନରେ ବାନ୍ଧିବ ।

## ଘୋଡାରୋଗ ।

ଏ ରୋଗରେ ଗୋରୁଖାଏନାହିଁ , ଘାରମଲ ମୂତ୍ର ବନ୍ଦହୁଏ, ଝାଡ଼ା ହୁଏନାହିଁ । ଷାଳଗୁଣିକାଠ ନୂଆଖପରରେ ରଖି ଧୂଆଁଦେଲେ ଭଲହୁଏ । ୧ ।

## ଝେର !

ଖଜକଣ୍ଟା ପତ୍ର ଖୁଆଇବ । ୧ । ସର୍ଗିଫଲ, ଭଲିଆ , ଲୁଣ, ଅଲକ୍ତ , ସମ ପରିମାଣରେ ଏକତ୍ରରେ ବାଟି ଖୁଆଇବ । ୨ । କାଉଁଶପତ୍ର ଓ ସର୍ଗି ବାଟି ଖୁଆଇବ । ୩ । ଫାଶିଗଛର ପତ୍ରକୁ ଦହିସଙ୍ଗେ ବାଟି ଦହିରେ ଗୋଳି ପିଆଇବ । ୪ । ଟିଭା କୋରୁହାଁ ଛାଇ ଦହିରେ ବାଟି ଗୋଳି ପିଆଇବ । ୫ । ମନ୍ଦୂରଚୂଲିଆ ମୂଳ ବଖୁଳ କୋଳରସ,ବେଲ୍ଦୃଅଗି ବାଟି ଦହିରେ ଗୋଳି ପିଆଇବ । ୬ ପର୍ବେଈ , ଶୋରଷ , ଲୁଣ ଗରଡ ( ଖଡ଼ ) ଗୋରୁକୁ ଖୁଆଇବ । ୭ ।

## ଜ୍ୱର ।

କର୍ପୂର ୬୦ ରତି , ସୋରା ୧ ତୋଲା , ମଦ ୨୫ ତୋଲା ଥ ଣିବ । ମଦରେ ପ୍ରଥମେ କର୍ପୂର ମିଶାଇ ପରେ ସୋରାକୁ ମିଶାଇବ ଛ ଘଡ଼ିରେ ସେରେ ଅଣ୍ଡାପାଣି ସଙ୍ଗେ ପିଆଇବ । ୧ । ସୋରା ୧ ତୋ

ଳା ୨୦ରତି , ଲୁଣ ୨ ତୋଳା , ଚବେଇଭା ଗୁଣ୍ଡ ୨୪ ତୋଳା ଗୁଡ ଦେଇବଟିକା ଏକନ୍ଦକର ଖୁଆଇବ । ୨ । କର୍ପୂର ୭୦ ରତି ସୋର୍ ୭୦ ରତି, ଦୁଦୁଗ୍‌ମଞ୍ଜି ଇଗୁଣ୍ଡ ୩୦ ରତି , ମଦ ୧ ଛଟାଙ୍କ ଅଣିବ । ମଦରେ ଯଥାକ୍ରମେ କର୍ପୂର , ସୋର୍ ଦୁଦୁଗ୍‌ମଞ୍ଜି ଇଗୁଣ୍ଡ ମିଶାଇ ଅଧସେର ପାଣିଅଯାଉ ସହିତ ଖୁଆଇବ ।

---

ଝୀଙ୍କ ହେଲେ ।

ଚୂନା ମାଛକୁ ପାଣିରେ ପକାଇବ , ମାଛ ପଚଗଲାକୁ ସେହି ପଚା ପାଣି ଗୋରୁଦେହରେ ବୋଳିବ । ୧ । ଅରଖଲା ଚେର ପାଣରେ ପଚାଇ ସେହି ପଚାପାଣି ବୋଳିବ ॥ ୨ ॥ ଗୁଡ, ଲୁଣଗୋଳ ଗୋରୁ ଦେହରେ ବୋଳିବ ॥ ୪ ॥ ଧୋବାଭୂଅଁରୁ ଗଣ୍ଡେନଳାଥଣି ଛନ୍ଦିବ ଅରଖ କ୍ଷୀର୍ ସାଇଥର ଦେଇ ଖରାରେ ଶୁଖାଇବ, ପରେ ସେହି ନଳାକୁ ଜଳନ୍ତା କରି ଗୁଆଘିଅରେ ବୁଡାଇ ବଦବାଇଦନ ଗୋଠରେ ବୁଲାଇବ ॥ ୫ ॥

---

ଢ଼ଣା ରୋଗକୁ ।

ଏରୋଗରେ ଗୋରୁ ଦୁର୍ବଳ ହୁଏ , ପାଣି ପିଇବାବେଳେ ଖୁଣ୍ଡ ଶବ୍ଦକରେ , ତାଳୁରେ ମୁହଁ ଗଳନ୍ଦା ଭଳ ଦୁଇଟି ଛିଦ୍ର ହୁଏ । ଗଣ୍ଡେ ଜାମୁ କାଠିରେ ଅଳନ୍ତା ଗୁଡାଇ ତାଳୁର ସେହିସ୍ଥାନରେ ଭର୍ତିକରି ଦେବ , ସେହିକାଠି ଯେପରି ଢଣା ଭିତରେ ବୁଡ ରହିବ , ସେହି ଫୋଡ଼ ମୁହଁରେ ଟେଙ୍ଗ ଦେଇ ଦା ଢଳାଇ ଦାଗିବ ଏବଂ ଲାଞ୍ଜର ଅଗ୍ରଭାଗଂଓ ଦୁଇଠେଙ୍ଗିରେ ଦାଗିବ । ୧ ।

---

## ଅନ୍ତବୃଦ୍ଧି ।

ତେଜପତ୍ରମୂଳ, ପୃଥିଶିଥ ହେଠମୂଳ, ହେଠାଉଥ ଗାଈ ମୂତ୍ରରେ ବାଟି ସ୍ତନରେ ଲେପିବ ।

## ଅର୍ଶ ।

ମହଣଫଳ, ଧାନୁଆଳକାମରଡ଼ ବାଟିଘୋଳ ପିଆଇବ ॥ ୧ ॥ ସହବୃଜମଞ୍ଜି, ବଜାଧାନ ( ଖଇ ସହିତ ), ଅଲନ୍ଦୁ ଗୋରୁମୂତ୍ରରେ ବାଟି ଲେପିବ । ୨ । ବହଳବଡ଼ଙ୍କା ଖଣ୍ଡ ଘାସ୍ୱଙ୍ଗରେ ଖୁଆଇବ । ୩

## ଦାନ୍ତ ସରସା ।

ଅରଗଣ୍ଠୀର ଛାଲୂରେଦେବ ॥ ୧ ॥ ଘିଅରେ ଭଲଅ ସିଝାଇ ସେହି ଗରମ ଘିଅରେ ବଳତା ବୁଡ଼ାଇ ଦାନ୍ତମୂଳେ ଧାରେ୨ ଲଗାଇବ । ୨ ॥ ଖଣ୍ଡସିନ୍ଦ୍ରୂ ରସ, ଲଗାଇବ ॥ ୩ ॥

## ଦୁର୍ବଳତା ।

ପାଣିକଟାର ଏକଗୋଟା ବାଟି ଭଣ୍ଡିରେ ବ୍ରିହ୍ମୀ ଖୁଜୁଳ ସେରେ ଲେଖାଏ ମିଶାଇ ଘୋଳାଏ ନୂଅ ହାଣ୍ଡିରେ ରଖିବ, ଭଣ୍ଡିରେ ଡାଳିଆପତ୍ର, ଗୁଡ଼, ଲୁଣ, ଭୂଇଁକଗର୍, ଛତୁଆରମୂଳ, ଚୂଡ଼ାପାଣି ଦହି ପକାଇ ଭଲରୂପେ ହାଣ୍ଡିର ମୁଖ ବନ୍ଦକରି ଏକମାସଯାଏ ରଖିବ । ତତ୍ପରେ ରୋଗକୁ ମଣ୍ଡଳକଷି ୮ ଦିନ ଯାଏ ପ୍ରତିଦିନ ସେରେ ଲେଖାଏ ଖୁଆଇବ ।

## ପୀଡ଼ାଶ୍ୱାସ ।

ଗୋରୁ ଅହାର ପରିତ୍ୟାଗକରି ଦୀର୍ଘ ସ୍ୱରରେ ବାରମ୍ବାର

ଘ୍ବକରେ କୌଣସି ଠାରେ ଛିଦ୍ରଦୋଷ ରହେ ନାହିଁ । ଏପରି ହେଲେ ୨ଥ ପଦର ରସ , ନାହାଲବେଲପତ୍ର ରସ , ଏକତ୍ର ପାକ କରି ଭାତରେ ମାଲିସ କରିବ ।

---

## ପେଟଫୁଲା ।

ଲୁଚନା ଗୁଳ, କଣ୍ଟାକୁଳଙ୍କ, ସହ୍ରସ୍ତକମୂଳ , ଅଳନ୍ତୁ, ଲୁଣ ବାଟି ପିଅଇବ । ୧ । ଦେଶୀମଦ ଦୁଇଛଟାଙ୍କ , ଶୁଣ୍ଠୀ ଚୂର୍ଣ୍ଣ ଏକ ଛଟାଙ୍କ , ବୋଲମରିଚ ଚୂର୍ଣ୍ଣ ୧ ତୋଳା ୨୦ ରତି, ଅଗ୍ନିରେ ଗରମ କରି ଈଷତ୍ ଖୁଆଇବ । ୨ । ପୁନର୍ଣ୍ଣବା ପତ୍ର ଦହିରେ ବାଟି ପିଅଇବ । ୩ । ଧନ୍ୟାଦି ପତ୍ର , ମରିଚ ଦହିରେ ବାଟି ପିଅଇବ ।

---

## ପୋକମରା ।

କେରେସିନ ତେଲ ଢାଳିଦେବ । ୧ । କୃଷ୍ଣପର୍ଣ୍ଣୀ ଚେର ( ଗଛବାର ଦ୍ନ ) ଅଣି ଖୁଆଇଦେବ । ୨ । ଚୂନ ଓ ଧୂ[illegible] ଦଶ ପୋକ ହୋଇଥିବା ସ୍ଥାନରେ ଦେବ । ୩ । କର୍ପୂର , ନଡ଼ିଆତେଲ ଏକତ୍ର କରିଦେବ । ୪ । ଶାପିଜ ତେଲ ଦେଲେ ମାଛି ବସିବେ ନାହିଁ । ଏବଂ ପୋକ ମରିବେ । ୫ । ବଡ଼ିଅଳପଗି ଚେହେର ଘା ରେ ଦେବ । ୬ । କୋରେଣ୍ଟଗୁଲ ଚେହେରକର ଦେବ । ୭ । ଡଙ୍ଗଡ଼ିଆ , ବଡ଼ିଅଳପଗି ଚେହେର ପତ୍ରସିଦ୍ଧ କ୍ଷୀରରେ ଗୋଳ ଲଗାଇବ । ୮ । ଅପାମାର୍ଗ ଗଛର ମୂଳ ତୁଳାଛଳରେ ବାଟି ଘାରେ ଦେବ । ୯ । ଝିଙ୍ଗିପିଡ଼ିର ଲଙ୍କା କଦଳୀ ପତ୍ର ସଙ୍ଗେ ଖୁଆଇଲେ ଘା ଶୁଖିବ । ପୋକ ମରିବେ । ୧୦ । ବେଙ୍ଗୁଟି ଚୂନ , ଘୃତ ଏକତ୍ର କରି ଉପରେ ପୁଟୁଳି ବାନ୍ଧି ଦେଲେ ପୋକମରି ଘା ଶୁଖିବ । ୧୧ । ଶିଙ୍ଘ୍ରକ୍ଷୀର ଓ ଅରଗ କ୍ଷୀର ଦେବ । ୧୨ ।

ଷାଭାଇଷବୁଡ ଦେଉ ବାନ୍ଧି ଦେବ । ୧୩ ।

ବାତ ।

ପେଟ ଫୁଲେ ଓ ଗନ୍ଥିନ ହରେ , ମଳମୂତ୍ର ବନ୍ଦ ହୁଏ , ଦେହ ଝାଞ୍ଜୁବେ,ଅହାର ବନ୍ଦହୁଏ , ଏପର ହେଲେ ଛତଚାଙ୍ଗଲ ଓ ବ୍ରିହ୍ମୀ ଏକଏ ସିଝାଇ କଣ୍ଟାହଳଦୀ ଚ୍ଛେଚକର ପକାଇ ଏକସଙ୍ଗର ଖୁଅ-ଇବ । ୧ । ଗେଣ୍ଡାଳିଅମୂଳ, ଷାଲେଇମଲଙ୍ଗ, କଣ୍ଟାହଳଦୀ , ବ୍ରିହ୍ମୀ, ଶାକର,ପାଣିକଷାରୁ , ଭୂଇଁକଟାରୁ ସମଭାଗରେ ଅଣି କଦଳୀମଣ୍ଡା ରସରେ ବାଟି ଲୁଣ ମିଶାଇ ଖୁଅାଇବ । ୨ । ଧନ୍ୟାଦି ପଞ୍ଚ , ଏକୋଇଶିଗଣ୍ଡା ଗୋଲମରିଚ ଗୁଅଦହିରେ ଗୋଳିପିଆଇବ । ୩ । କଣ୍ଟାହଳଦୀ ଦହି ଗୋଳି ପିଆଇବ । ୪ । ହଳଦୀ ଫୁଲ , କୋଷା-ପୋକ , ଦହି ଏକଏକର ଖୁଆଇବ । ୫ । କଇଁଶିକାବୁଡା ମୂଳ , ହରିଶଙ୍କର ମୂଳ , ମଙ୍କୁର ଦୂଲଅ ମୂଳ , ପାଳଝୋଣ୍ଟି ମୂଳ ଗାଇ-ଦହିରେ ବାଟି ପିଆଇବ । ୬

ଫୁଲପଡା ।

ସୋହାଗାର ଖଇ ଯେତେ, ଗୋଲ୍ପଫୁଲ ତେତେ ଏକତ୍ରକର ଖୁଆଇ ଦେଲେ ପ୍ରସବ ଶେଷରେ ଗାଇର ଫୁଲ ପଡୁନଥିଲେ ଶୀଘ୍ର ଫୁଲପଡବ ।

ବାଘୁଅ ।

ବାକଠାରୁ ମୁହଁଯାଏ ଫୁଲିଯାଏ , ଅହାର କରିବା , ଯିବା ଅସିବା ବନ୍ଦ ହୁଏ । ଏପର ହେଲେ ମସୁର , କୋଳଥ ସିଝାଇ ସେଥିଶିରେ ଖଣ୍ଡେ କଳାବୁଡାଇ ସେକ ଦେବ ଏବ ଛଣ୍ଡୁରୁ ଏକ

ଛୁଣ୍ଟାଙ୍କ ପିଆଇ ଦେବ । ୧ । ବେଗୁନିଆ ପତ୍ର , ଅରଖ ପତ୍ର , ଧୁଦୁରାପତ୍ର, ଉଙ୍କାଶି ପତ୍ର, ପ୍ରସାରୁଣୀ ପତ୍ର ଏକତ୍ର ସିଦ୍ଧାଇ ତହିଁରେ କିଛି ପିପଳୀ ଗୁଣ୍ଡ଼ା ମିଶାଇବ , ତହିଁରୁ ଏକ ଛଟାଙ୍କ ପିଆଇବ ଏବଂ ତହିଁରେ କନା ବୁଡ଼ାଇ ସେକ ଦେବ । ୨ ।

——୦——

## ବଗୁଡ଼ିଆ ରୋଗ ।

ଲାଙ୍ଗୁଡ଼ ଅଗ୍ରଭାଗରେ ଘାହୁଏ, ବାଳ ଝଡ଼ିପଡ଼ି ଯାଏ, ବାଳଝଡ଼ାରଙ୍କୁ ବଢ଼ିଉଠେ ; ଏପରି ହେଲେ ଗୁଆଦନରୁ ବଣ୍ଟା ହୋଇଥିବା ଶୋରିଷ ଘାରେ ଲେପିବ । ୧ । ଭାଲିଆ ମିଶା ଶୋରିଷ ତେଲ କୋଣ୍ଟାଏ ପାତ୍ରରେ ରଖି ଗରମ କରିବ , ତେଲ ଝଡ଼ୁର ଅଗ୍ନିରୁ ସେ ଲାଙ୍ଗୁଡ଼କୁ ତହିଁରେ ବୁଡ଼ାଇ ଦେବ । ୨ । କର୍ପୂର , ଶୋରିଷ, ମଦ , ନୀଳ ଗଛର ପତ୍ର ବା ନୀଳ ବଡ଼ି ବାଟି ଲେପଦେବ । ୩ । ଲାଞ୍ଜରେ ବଗୁଡ଼ ମଲ ବୋଲିଦେବ, ଅଇଁସ କଣ୍ଟା ପତ୍ରରେ ଦିପଦାର ଘସି ଦେଇ ପତ୍ରକୁ ଜଳାଇ ତହିଁରେ ଲାଞ୍ଜକୁ ସାତଥର ଛାଟିଦେବ । ୪ ।

——୦୦——

## ବେଙ୍ଗା ।

ଗୋରୁର ଚଣ୍ଟିକା ପାଖରେ ମାଂସ ଝୁଲୁଥିବା ହୋଇ ବାହାରି ପଡ଼ିଲେ ସୁନାଗଫଳ ପୋଡ଼ା ଫୁଲ ଉପରେ ଦାଗିବ । ୧ । ପୁରୁଣା ବାଉଁଶ ପୋଡ଼ାଗଣ୍ଠିରୁ ତାଙ୍କୁ ଜଳାଇ ତଦ୍ଦ୍ୱାରା ଦାଗିବ । ୨ । ଗୋରୁର ଝଡ଼ମୂଳ ଫୁଲିଥିଲେ , ଦେହ ତାତିଥିଲେ ଏବଂ ଝେର ହେଉଥିଲେ କଣ୍ଠରେ ଦାଗିବ ଏବଂ ଲଙ୍କାମରିଚ , ଶୋରିଷ , ଓଲୁଅ , ବେଗୁନିଆ ପତ୍ର , ଉଙ୍କାରିପତ୍ର , ଅଳନ୍ଦୁ , ଘିଅ , ଲୁଣ ଆଣି କୁଟିବ, ଗୋରୁକୁ ମାଡ଼ି ବସି ତହିଁରୁ ମେଞ୍ଚାଏ ଲେଖାଏ

ଖାଇବ । ୩ । ଲୁଣ , ଘିଅରେ ବାଟି ଖାଇବ । ୪ । ଘିଅ ଓ ଗୁଆଘିଅ ଏକଦଫ ଗରମ କରେ ଘିଲଥିଲୁ ବାହାର କରି ଦେଇ ସେହି ଘିଅରେ ଲିଆ ( ଖଇ ) ଭୁଜାଇ ଖାଇବ । ୫ । ଅଦା , ଗୁଆଘିଅ ଗନ୍ଧ ଖାଇବ । ୬ । କରଡ଼ା ଗୁଆଘିଅ ଗନ୍ଧ ଖାଇବ । ୭ । ନାଲକଣ୍ଠ ଓ ଦହି ଏକଦଫରେ ଖାଇବ । ୮ । ଜୁମା ଜୁମା ଲିଆ ଓ ଦହି ଖାଇଲେ ଭଲ ହେବ । ୯ ।

—*○—

ଭେଦ । ( କୋଷ୍ଠବଦ୍ଧ ହେଲେ )

ଜୟପାଳ ମଞ୍ଜି ୧୦ ରତି, ଲୁଣ ୧୫ ତୋଲା ଏକଦଫକର ଅଧସେର ଗରମ ପାଣିରେ ମିଶାଇ ଖାଇବ । ୧ । ଗନ୍ଧକ ଚୂର୍ଣ୍ଣ ୫ ତୋଲା, ମସିନା ତେଲ ୧୦ ତୋଲା ଅଧସେର ଗରମପାଣି ସହିତ ଖାଇବ ୨ । ମସିନା ତେଲ ଦେଢ଼ପା , ଗନ୍ଧକ ଗୁଣ୍ଡି ୧୦ ତୋଲା , ଶୁଣ୍ଠି ଗୁଣ୍ଡି ୧ ତୋଲା ୨୦ ରତି, ଅଧସେର ଗରମପାଣି ସହିତ ଖାଇବ ୩ । ଲୁଣ ଦେଢ଼ପା , ମୁସବ୍ବର ୨୦ ରତି , ଗନ୍ଧକ ଗୁଣ୍ଡି ୫ ତୋଲା ଶୁଣ୍ଠିଗୁଣ୍ଡି ୨୩ ତୋଲା , ଗୁଡ଼ ୧୦ ତୋଲା ସେରେ ଗରମପାଣି ସହିତ ଖାଇବ । ୪ । ଲୁଣ ୧୦ ତୋଲା , ଗନ୍ଧକଚୂର୍ଣ୍ଣ ୭୩ ତୋଲା ୨ ସେର ଗରମ ପାଣିରେ ପକାଇ ଶୀତଳ ହେଲରୁ ଖାଇବ । ୫ । ଅଲଦୁ , ଲୁଣ ଏକଦଫକର ଖାଇବ । ୬ ।

---

ରକ୍ତ ମୂତ୍ର ।

ଏରୋଗ ବଡ ମାରାତ୍ମକ । ଗୋରୁ ଦେହ ବଡ ଦୁର୍ବଳ ହୁଏ , ଚର୍ମ ଶୁଷ୍କ ହୋଇଯାଏ ଏବଂ ଜଳପିଅ ବଢେ , ପେଟ ପାତ୍ରା ହୋଇ ଝାଡା ବନ୍ଦ ହୁଏ , ପରିସ୍ରା ଅଳ୍ପ ରକ୍ତବର୍ଣ୍ଣ ହୁଏ , ପେଟ ଫୁଲଇ , ପରିସ୍ରା ହେବାବେଳେ କଷ୍ଟ ହୁଏ , ଏପରି ହେଲେ ଦେଢ଼ପା ଲୁଣ

୫ ତୋଲା ଗନ୍ଧକଚୂର୍ଣ୍ଣ , ୨୪ ତୋଲା ଶୁଣ୍ଠୀଗୁଣ୍ଡ , ୧୦ ତୋଲା
ଗୁଡ଼ ଏକସେର ଗରମପାଣି ସହିତରେ ଖୁଆଇବ । ୧୨ ଘଣ୍ଟା ମଧ୍ୟରେ
ଭଲରୂପେ ଝାଡ଼ା ନହେଲେ ଉପରୋକ୍ତ ଔଷଧ ଭାଗର ଅର୍ଦ୍ଧାଂଶ,
ଖୁଆଇବ । ଭଲରୂପେ ଝାଡ଼ା ହେଲାରୁ ଶୁଣ୍ଠୀ , ଚବେଇଭା ,
ଗୋଲମରିଚ ଏସବୁ ୧ ତୋଲା , ୨୦ ରତି ଲେଖାଏ ଆଣି
ଏହି ଗୁଡ଼ାକ ଲୁଣସଙ୍ଗେ ମିଶାଇ ଗୁଣ୍ଡ କରିବ ଅଳ୍ପ ଗରମଥିବା
ଯାଉରେ ଉକ୍ତ ଗୁଣ୍ଡ ଓ କିଛି ଗୁଡ଼ ମିଶାଇ ଖୁଆଇବ । ୧ ।
ଜଳ ବନ୍ଦ ଅବସ୍ଥା ଦେଖିବା ମାତ୍ରେ ପଞ୍ଚପକ୍ଷୀ ସିଝା ପାଣି ଅଳ୍ପ-
ଗରମ ଥାଉଁ ୨ ପିଆଇବ । ୨ ।

---

## ଜଲ ରକ୍ତ ଝାଡ଼ା ।

ଗରମ କପଡ଼ା ଗରମ ପାଣିରେ ବୁଡ଼ାଇ ଦଣ୍ଡେ କାଳ ଯାଏ
ଜୋରୁ ପେଟରେ ସେକ ଦେବ, ଅଥବା ଗରମ ଲୁହାରେ ପେଟ
ଦାଗିଦେବ । ସେକ, ଦାଗ ଦେବା ସ୍ଥାନରେ ଥଣ୍ଡା ଲଗାଇବ ନାହିଁ
ସେ ସ୍ଥାନକୁ ଶୁଖିଲା ଲୁଗାରେ ପୋଛି ଦେଇ ଶୋରିଷ ତେଲ
ଛଟାଙ୍କର ଅଧେ ତାର୍ପିନ ତେଲ ଏକାଠିକରି ମାଲିସ କରିବ । କୁନ୍ଥ,
ପ୍ରବଳ ଥିଲେ ଅଣ୍ଟା ଚାରିପାଖେ ଗଣ୍ଡେ କୋର ବା ଦଉଡି ଭଲ-
ରୂପେ ବାନ୍ଧିଦେବ, ଝାଡ଼ା ବନ୍ଦ ହୋଇବା ନିମନ୍ତେ ସମସ୍ତେ ୨ ଚାଉ
ଳର କଞ୍ଜି ଯଉ ୧ ସେରରେ ଅଫୁ ସାଢ଼େ ସାତମଶା ମିଶାଇ
ମଳଦ୍ୱାରରେ ପିଚକାରି ଦେବ । କିମ୍ବା ଦୋଅଣୀ ଓଜନର ସଫେଦା
ଅଢ଼େଇ ତୋଳା ଦୁଷ୍ଟଖଣ୍ଡଚୂର୍ଣ୍ଣ, ୨୪ ମଶା ଅଫିମ, ଚାଉଳର କଞ୍ଜି
ଯାଉରେ ମିଶାଇ ଖୁଆଇବ ।

---

## ସର୍ଦ୍ଦି ।

ଗୋରୁର ନାକରୁ ପାଣି ବାହାରେ, ସର୍ବଦା ଘଡ଼ି ୨ କରେ ଏପରି ହେଲେ ମରିଚଗୁଣ୍ଡା ନାକରେ ଭର୍ତ୍ତିକରି ଅଳ୍ପମାତ୍ର ଗ-ରମଥିବା ଗୁଅପିଅ ଏକପଲା ପ୍ରମାଣରେ ଢାଳି ଗଛ ନଳୀରେ ମୁହଁ ଦେଇ ଫୁଙ୍କିବ ଯେପରି ତାହା ଗୋରୁର ତାଳୁ ଭିତରକୁ ଯାଇ ପାରିବ । ୧ । ଅଦାରସ, ମରିଚଗୁଣ୍ଡ; ଗୁଅପିଅ ଏକତ୍ରଅଳ୍ପ ଗରମକରି ନାକରେ ଭର୍ତ୍ତି କରି ଦେବ ଏବଂ ଶିଙ୍ଗ ମୂଳରେ ବହ୍ନି ଢାଳିଦେଇ ମାଲିସ କରିବ । ୨ ।

---

## ଶିଙ୍ଗଭଙ୍ଗା ।

ଗୋରୁଙ୍କ ଶିଙ୍ଗ ଭାଙ୍ଗିଗଲେ ଅଡ଼ୁଆ ଦାଲି ଓ ବୟା ବ୍ରିହି ଗଣ୍ଡେ ଜନାରେ ଦେଇ ବାନ୍ଧିବ । ୧ । ଶିଙ୍ଗରେ ପୋକହେଲେ ବାଉଁଳାଗ୍ରନ୍ଥ ସେଠାରେ ୭ ଥର ଘଷିବ । ୨ । ପୋକହେଲେ ଶେଙ୍କୁ ଚୂନ ଓ ଗୁଡ଼ ଲେପିବ । ୩ । ମୋଟା ଲୁଗାରେ ଅଲକାତରା ବୋଳି ଶିଙ୍ଗରେ ବାନ୍ଧିଲେ ଭଙ୍ଗାଶିଙ୍ଗ ଭଲହେବ । ୪ । ପାଚିଲା କଞ୍ଚୁଡ଼ ତେଲି ପୋକ ହୋଇଥିବ । ସ୍ଥାନରେ ଭର୍ତ୍ତିକରିଦେବ । ୫

---

## କାଶଶ୍ୱାସ ।

ରସସିନ୍ଦୂର ଓ ଘିଅ ଏକତ୍ର ମିଶାଇ ଖୁଆଇବେ ଅତିଶୀଘ୍ର କାଶଶ୍ୱାସ ରୋଗ ଭଲହେବ ।

---

ସମାପ୍ତ ।